କବି ସୂର୍ଯ୍ୟ

# ବଳଦେବ ରଥ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା

ଭୁବନେଶ୍ୱର

# କବି ସୂର୍ଯ୍ୟ ବଳଦେବ ରଥ

| | |
|---|---|
| ଲେଖକ | ଡକ୍ଟର ଲକ୍ଷ୍ମୀକାନ୍ତ ଖୁଣ୍ଟିଆ |
| ପ୍ରଥମ ପ୍ରକାଶ | ୨୦୦୨ |
| ପ୍ରକାଶକ | ଶ୍ରୀ ଭୁବନାନନ୍ଦ ତ୍ରିପାଠୀ, ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା, ଜନଶିକ୍ଷା ଭବନ, ୟୁନିଟ୍-୫, ଭୁବନେଶ୍ୱର-୭୫୧୦୦୧ |
| ପ୍ରଚ୍ଛଦ ଓ ଅଙ୍ଗସଜ୍ଜା : | ବ୍ରଜକିଶୋର ଜେନା |
| ପ୍ରକାଶନ ସଂଖ୍ୟା | ଏସ୍.ଆର୍.ସି.-୩୪୦-୪୧/୨୦୦୧-୨୦୦୨ |
| ମୁଦ୍ରଣ ସଂଖ୍ୟା | ୧,୦୦୦ |
| ମୁଦ୍ରଣ | ଅପୂର୍ବା, ଭୁବନେଶ୍ୱର |
| ମୂଲ୍ୟ | ଟ ୪.୫୦ |

---

# Kavi Surya Baladeva Rath

| | |
|---|---|
| Writer | Dr. Laxmi Kanta Khuntia |
| First Edition | 2002 |
| Publisher | Sri Bhubanananda Tripathy, Director, State Resource Centre for Adult Education,Orissa,Janasiksha Bhawan, Unit-V, Bhubaneswar-751001 |
| Cover & layout : | B.K. Jena |
| Publication No | SRC-340-41/2001-2002 |
| No. of copies | 1,000 |
| Printed at | Apurba, Bhubaneswar |
| Price | Rs 4.50 |

ଆମର ଏଇ ଉତ୍କଳ ଭୂଇଁରେ ବହୁ କବି ଜନ୍ମ ଗ୍ରହଣ କରିଥିଲେ । ସେମାନେ ଲେଖିଥିବା କାବ୍ୟ, କବିତା ଗୁଡ଼ିକ ପଢ଼ିଲେ ମନରେ ଅପୂର୍ବ ଆନନ୍ଦ ଜାତ ହୋଇଥାଏ । ସେହି ସବୁ ଉଚ୍ଚକୋଟିର କାବ୍ୟ କବିତା ପାଇଁ ଆଜି ସେମାନେ ମରି ମଧ ଅମର ହୋଇ ରହିଛନ୍ତି ।

ସେହିପରି ଜଣେ ପ୍ରତିଭାଶାଳୀ ଅମରକବି ହେଉଛନ୍ତି କବିସୂର୍ଯ୍ୟ ବଳଦେବ ରଥ । ତାଙ୍କ ଲିଖିତ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ଓଡ଼ିଶାର ଘରେ ଘରେ ପରିଚିତ । ତା ଛଡ଼ା ତାଙ୍କ ଲିଖିତ ଭଜନ ଓ ଚଉପଦୀ ଗୁଡ଼ିକୁ ମଧ ଲୋକେ ବଡ଼ ଆଦର କରିଥାନ୍ତି ।

## ବଂଶ ପରିଚୟ

ଗଞ୍ଜାମ ଜିଲ୍ଲାରେ ବଡ଼ଖେମୁଣ୍ଡି ବୋଲି ଗାଁଟିଏ ଅଛି । ପୂର୍ବେ ତାହା ଏକ ଦେଶୀୟ ରାଜ୍ୟ ଭାବରେ ପରିଚିତ ଥିଲା । ଖେମୁଣ୍ଡି ରାଜ୍ୟର ରାଜଧାନୀ ବିଜୟ ନଗରରେ ଜଣେ ବଡ଼ ପଣ୍ଡିତ ରହୁଥିଲେ । ନାଁ ତାଙ୍କର ଉଜ୍ଜ୍ୱଳ ରଥ । ସେ ବଡ଼ ଖେମୁଣ୍ଡି ରାଜାଙ୍କର ସଭାକବି ଓ ସଂସ୍କୃତ ପଣ୍ଡିତ ଭାବରେ ବେଶ୍ ଜଣାଶୁଣା ଥିଲେ । ତାଙ୍କର ପାଣ୍ଡିତ୍ୟରେ ଖୁସି ହୋଇ ରାଜା ତାଙ୍କୁ 'କବିରାଜ ବ୍ରହ୍ମା' ଉପାଧି ଦେଇଥିଲେ । ସେ ଆଠଗଡ଼ର ପଣ୍ଡିତ ତ୍ରିପୁରାରୀଙ୍କ ଝିଅକୁ ବିବାହ କରିଥିଲେ । ତାଙ୍କର ସୁଲକ୍ଷଣା ବୋଲି ଝିଅଟିଏ ଓ ହରିହର ବୋଲି ପୁଅଟିଏ ଜନ୍ମ ହୋଇଥିଲା । ବଡ଼ ହେଲାପରେ ସେମାନଙ୍କର ବିବାହ ହୋଇଥିଲା । ହେଲେ ଅଳ୍ପଦିନ ଭିତରେ ଝିଅଟି ବିଧବା ହେଲା ଆଉ ପୁଅର ସ୍ତ୍ରୀ ମରିଗଲା । ରଥଙ୍କ ଘରେ ଭାଙ୍ଗେଣି ପଡ଼ିଗଲା । ସେମାନେ କରିବେ କ'ଣ ? ତେବେ କ'ଣ

ତାଙ୍କର କୁଳ ବୁଡ଼ିଯିବ ? ତାଙ୍କୁ ଆଉ କିଛି ଭଲ ଲାଗିଲା ନାହିଁ । ସ୍ୱାମୀ ସ୍ତ୍ରୀ ଦୁହେଁ ନିଜ ଘରର ଦେବତା ବଳଦେବଙ୍କୁ ଭକ୍ତିରେ ପୂଜା କରିବାରେ ଲାଗିଲେ । ବହୁତ ଦିନ ପରେ ପ୍ରଭୁ ବଳଦେବ ତାଙ୍କର ଡାକ ଶୁଣିଲେ ।

## ନୂଆ ସୂର୍ଯ୍ୟଟିଏ ଉଇଁଲା

ସେଦିନ ଥିଲା ୧୭୮୯ ମସିହା ମାଘମାସର ଶୁକ୍ଳପକ୍ଷ ପଞ୍ଚମୀ ତିଥି । ପିତାମାତାଙ୍କର କୋଳମଣ୍ଡନ କରି ବୁଢ଼ାବେଳକୁ ପୁଅଟିଏ ଜନ୍ମ ହେଲା । ସରସ୍ୱତୀଙ୍କର ପୂଜା ଦିନରେ ଜନ୍ମ ହୋଇଥିବାରୁ ମନେ ହେଲା ସତେ ଯେପରି ନିଜେ ସରସ୍ୱତୀ ବଳଦେବ ରୂପରେ ଜନ୍ମ ନେଇଛନ୍ତି କି ? ଉଜ୍ଜ୍ୱଳ ରଥଙ୍କର ମୁହଁରେ ହସ ଉକୁଟି ଉଠିଲା । ନିଜର ଆରାଧ ଠାକୁର ବଳଦେବଙ୍କ ଦୟାରୁ ବୁଢ଼ା ଦିନେ ପୁଅଟିଏ ପାଇଥିବାରୁ ଆନନ୍ଦର ସୀମା ରହିଲା ନାହିଁ । ଦିଅଁଙ୍କର ନାଁ ଅନୁସାରେ ପୁଅଟିର ନାଁ ଦିଅଗଲା "ବଳଦେବ" । ସେହି ବଳଦେବ ଆଜିର ଓଡ଼ିଶା ପ୍ରସିଦ୍ଧ କବିସୂର୍ଯ୍ୟ ବଳଦେବ ରଥ ।

## ଅଜାଙ୍କ ଘରେ ରହଣି

ବଳଦେବ ଦିନକୁ ଦିନ ବଡ଼ ହେବାକୁ ଲାଗିଲେ । ବାପା ଉଜ୍ଜ୍ୱଳ ରଥ ଜଣେ ବଡ଼ ପଣ୍ଡିତ ଥିଲେ । ସେ ପିଲାମାନଙ୍କୁ ପଢ଼ାଇବାବେଳେ ବଳଦେବ ତାଙ୍କ ପାଖରେ ବସି ଶୁଣି ଶୁଣି ଅନେକ ପାଠ ପଢ଼ିଗଲେ । ଦଶବର୍ଷ ବୟସ ବେଳେ ତାଙ୍କର ବ୍ରତଘର ହେଲା । ବ୍ରତ ହେବାର ଚାରିମାସ ପରେ ତାଙ୍କ ଜୀବନରେ ଏକ ବଡ଼ ବିପଦ ଆସି ଦେଖା ଦେଲା । ତାଙ୍କ ସ୍ନେହମୟୀ ମାଆଙ୍କର ମୃତ୍ୟୁ ଘଟିଲା ।

ସେତେବେଳକୁ ଉଜ୍ଜ୍ୱଳ ରଥ ପ୍ରାୟ ବୁଢ଼ା ହୋଇଗଲେଣି । ମାଆ ଛେଉଣ୍ଡ ପିଲାଟିକୁ କେମିତି ପାଳିବେ ? ଏଇ ଚିନ୍ତାରେ ତାଙ୍କୁ କିଛି ବୁଦ୍ଧିବାଟ ଦେଖାଗଲା ନାହିଁ । ଏ ଖବର ପାଇ ଅଜା ତ୍ରିପୁରାରୀ ଓଝା ତାଙ୍କ ଘରକୁ ଧାଇଁ ଆସିଲେ ।

ସେ ଦେଖିଲେ ଏଭଳି ଅସାଧାରଣ ପ୍ରତିଭା ଥିବା ପିଲାଟିକୁ ନିଜ ପାଖରେ ରଖି ଦାୟିତ୍ୱ ନ ନେଲେ ସେ ଅମଣିଷ ହୋଇଯିବ । ସେ ତ ଜଣେ ବଡ଼ ପଣ୍ଡିତ ଥିଲେ । ତେଣୁ ସେ ନାତି ବଳଦେବଙ୍କୁ ନିଜ ସାଙ୍ଗରେ ଧରି ଆଠଗଡ଼କୁ ଚାଲି ଆସିଲେ ।

## ସଂସ୍କୃତ ପାଠ ପଢ଼ିବାକୁ ହେଲା

ଆଗ କାଳରେ ପଢ଼ିବା ପାଇଁ ଏତେ ତ ପ୍ରାଥମିକ ବିଦ୍ୟାଳୟ ନଥିଲା । ଯାହାଥିଲା ଚାଟଶାଳୀ ଆଉ ସଂସ୍କୃତ ଟୋଲ୍ । ପିଲାମାନେ ସେହି ସଂସ୍କୃତ ଟୋଲ୍‌ରେ ସଂସ୍କୃତ, ସାହିତ୍ୟ, ବ୍ୟାକରଣ ଆଦି ପାଠ ପଢୁଥିଲେ । ବଳଦେବଙ୍କ ବାପା ଜଣେ ସଂସ୍କୃତ ପଣ୍ଡିତ ଥିଲେ । ତେଣେ ଅଜା ବି ଜଣେ ପଣ୍ଡିତ । ସେ ସଂସ୍କୃତ ଭାଷାକୁ ଅଳ୍ପଦିନରେ ଆୟତ୍ତ କରି ନେଲେ । ତା ସହିତ ଅଜାଙ୍କଠାରୁ ସେ ଓଡ଼ିଆ ପାଠ ବି ଶିଖୁଥିଲେ । ଅଜା ଥରେ ଯାହା କହି ଦିଅନ୍ତି ସେ ତାକୁ ସଂଗେ ସଂଗେ ମନେ ରଖି ଦିଅନ୍ତି । ଆଉ ଜମା ଭୁଲନ୍ତି ନାହିଁ । ଅଜାଙ୍କ ଘରେ ବଳଦେବଙ୍କ ନିଜର ପାଠପଢ଼ା ସରିଲା ।

## ଝଡ଼ ଉଭେଇଗଲା

ବଳଦେବଙ୍କ ଅଜା ଖାଲି ଜଣେ ନାମଜାଦା ସଂସ୍କୃତ ପଣ୍ଡିତ ନଥିଲେ । ସେ ଆଉ ଅନେକ ବିଦ୍ୟା ଜାଣିଥିଲେ । ସେ ଅଞ୍ଚଳରେ ଜଣେ ନାମଜାଦା ଲୋକ ଭାବରେ ସେ ବେଶ୍ ଜଣାଶୁଣା ଥିଲେ । ବୁଦ୍ଧି ବଳରେ ବହୁ ଅସମ୍ଭବ କଥାକୁ ସେ ସମ୍ଭବ କରି ପାରୁଥିଲେ । ଲୋକେ ବିଶ୍ୱାସ କରୁଥିଲେ ଯେ, ଦେବୀଙ୍କ ଦୟାରୁ ସେ ଏଭଳି କାମ କରିପାରୁଛନ୍ତି ।

ଦିନକର କଥା । ବଳଦେବ ଗାଁ ପିଲାମାନଙ୍କ ସହିତ ମିଶି ବାଣ ମାରିବେ ବୋଲି ଠିକ୍ କଲେ । ଭୋକ ଶୋଷ ଭୁଲି ପିଲାମାନେ ଦିନଯାକ ବାଣ ତିଆରି କଲେ । ସଂଧ୍ୟା ହେଲେ ବାଣ ମରାଯିବା କଥା ଆଉ ତା ସହିତ ମଧ ବହୁତ

ମଜା ହେବ । କିନ୍ତୁ ଦିନ ବୁଡ଼ିଲା ବେଳକୁ ପିଲାମାନଙ୍କ ସରାଗ କେଉଁଆଡ଼େ ଚାଲିଗଲା । ହଠାତ୍ ଝଡ଼ ସହିତ କଳା ହାଣ୍ଡିଆ ମେଘ ମାଡ଼ି ଆସିଲା । ଏମିତି ବର୍ଷା ହେଲା ଯେ, ଅଳ୍ପ ସମୟ ଭିତରେ ସବୁଆଡ଼ ପାଣିରେ ବୁଡ଼ିଯିବା ଭଳି ମନେହେଲା । ବର୍ଷା ଛାଡ଼ିଯିବା ଭଳି ଦେଖାଯାଉନି ।.ତାଙ୍କତଳେ ତ ବାଣ ମାରି ହେବ ନାହିଁ । ତେବେ କଣ ସେମାନଙ୍କର ବାଣମରା ବନ୍ଦ ହୋଇଯିବ ? ସମସ୍ତଙ୍କ ମୁହଁ ଶୁଖିଯାଇଥାଏ । ଯିଏ ଯାହାର ଘରକୁ ମନଦୁଃଖରେ ଫେରିଗଲେ ।

ବାଳକ ବଳଦେବ ମଧ ଲୁହ ଛଳ ଛଳ ଆଖିରେ ଘରକୁ ଫେରିଆସିଲେ । ନାତିର ଆଖିରେ ଲୁହ ଦେଖି ତ୍ରିପୁରାରୀ ସହି ପାରିଲେ ନାହିଁ ।

ସେ ନାତିକୁ କୋଳକୁ ଆଉଜାଇ ନେଇ ପଚାରିଲେ-"କିରେ, ଏମିତି ମୁହଁ ଶୁଖାଇଛୁ କାହିଁକି ? ତୋ'ର କ'ଣ ହେଲା କି ?"

ବଳଦେବ କାନ୍ଦ କାନ୍ଦ ହୋଇ ସବୁକଥା କହିଲେ । ନାତିଠାରୁ ସବୁକଥା ଶୁଣି ଦେଇ ଅଜା ଟିକିଏ ହସି ଦେଲେ । ବାହାରକୁ ଉଠିଯାଇ ଆକାଶକୁ ଭଲ ଭାବରେ ଅନାଇଲେ । ତା' ପରେ କହିଲେ-"ତମେମାନେ ଏଥର ଯାଇ ବାଣ ମାର । ଆଉ ଝଡ଼ ବର୍ଷା ହେବ ନାହିଁ ।" ଗାଁରେ ଆଉ ଝଡ଼ବର୍ଷା ହେଲା ନାହିଁ । ପିଲାମାନେ ବାଣମାରି ମଉଜ କଲେ । ପିଲାମାନେ ଦେଖିଲେ ଅଜାଙ୍କ କଥା ଅନୁସାରେ ଝଡ଼ କେଉଁଆଡ଼େ ଉଭେଇଗଲା ।

## ମୋ ଅଜା ଖାଇବେ କଣ ?

ସେ ଦିନ ବାଣମରା ମଜାରେ ହୋଇଗଲା । ପିଲାମାନେ ଭାବିଲେ ଅଜା ମନ୍ତର କରି ମେଘ ପବନକୁ ଉଡ଼ାଇ ଦେଲେ । କିନ୍ତୁ ଏ କଥାରେ ବାଳକ ବଳଦେବଙ୍କର ସରଳ ମନଟା ଅସ୍ଥିର ହୋଇ ଉଠିଲା । ଅଜା ଏମିତି କି ବିଦ୍ୟା ଶିଖିଛନ୍ତି ଯେ ସେ କହୁ କହୁ ଏପରି ଅଦ୍ଭୁତ ଘଟଣା ଘଟିଯାଉଛି । ତେଣୁ ସେ

ମଧ ଅଜାଙ୍କ ପରି ଏମିତି ବିଦ୍ୟା ଶିଖିବାକୁ ମନ ବଳାଇଲେ । ସେଇକଥା ଭାବି ଭାବି ତାଙ୍କ ଆଖିକୁ ନିଦ ଆସିଲା ନାହିଁ । ଦିନେ ସେ ନିଜର ମନ କଥା ଅଜାଙ୍କ ଆଗରେ ଖୋଲି କହିଲେ । ତାଙ୍କୁ ପଚାରିଲେ-''ଅଜା, ସେ ଦିନ ତୁମେ ଯେଉଁ ମନ୍ତ୍ର ବଳରେ ଝଡ଼ ବର୍ଷାକୁ ଉଡ଼େଇ ଦେଲ, ମତେ ଟିକେ ସେଇ ମନ୍ତ୍ର ଶିଖାଇ ଦେବ ନାହିଁ ?''

ନାତିଠାରୁ ଏପରି କଥା ଶୁଣି ଅଜା ହସିଦେଲେ । ନାନା କଥା କହି ସେ ନାତିକୁ ବୁଝାଇବାକୁ ଚେଷ୍ଟାକଲେ । ହେଲେ ବଳଦେବ ବୁଝିବାକୁ ନାରାଜ ।

ଅଜା ମନ୍ତ୍ର ଶିଖାଉ ନାହାନ୍ତି । ତେଣେ ନାତିର ଜିଦ୍ ସେ ମନ୍ତ୍ର ଶିଖିବ ।

ଶେଷରେ ଦିନ ଯାଇ ରାତି ହେଲା । ଅଜାଙ୍କ ପାଇଁ ପିଇବାକୁ କ୍ଷୀର ଆସିଲା । କ୍ଷୀର ଟିକିଏ ପିଇ ଦେବାକୁ ସେ ନାତିକୁ କହିଲେ । ହେଲେ ବଳଦେବଙ୍କର ଗୋଟିଏ ଜିଦ୍ ସେ ମନ୍ତ୍ର ନ ଶିଖିଲେ ଅନ୍ନଜଳ ଛୁଇଁବେ ନାହିଁ । ଅଜା ବଡ଼ ଅଡୁଆରେ ପଡ଼ିଲେ । ମାଆ ଛେଉଣ୍ଡ ପିଲାଟି କ'ଣ ରାତିରେ ଉପାସରେ ଶୋଇବ !

ଅଜା ଉପାୟଟିଏ ପାଇଲେ । ଆମେ ସବୁ ତ ବିଶ୍ୱାସ କରୁ ଯେ, ସରସ୍ୱତୀ ଦୟାକଲେ ପାଠ ହୁଏ । ଭଲ ପାଠ ପଢ଼ିବା ପାଇଁ ବଳଦେବଙ୍କ ମନରେ ଆଗ୍ରହ ସୃଷ୍ଟି ପାଇଁ ଅଜା ସ୍ଥିର କଲେ । ସେ ଦିନ ରାତିରେ ସେମାନଙ୍କ ପିଇବା ପାଇଁ ରଖାଯାଇଥିବା କ୍ଷୀରକୁ ସେ ସରସ୍ୱତୀଙ୍କ ପାଖରେ ଭୋଗକଲେ । ବାଳକ ବଳଦେବଙ୍କୁ ବୁଝାଇଲେ । କହିଲେ-''ଠାକୁରାଣୀଙ୍କ ପାଖରେ ଭୋଗ ଲାଗିଥିବା କ୍ଷୀର ସେ ପିଇଦେଲେ ପାଠ ମନେ ରହିବ, ବୁଦ୍ଧି ବଢ଼ିବ ।'' ଏହି କ୍ଷୀର ପିଇଲେ ସେ ବହୁକଥା ଜାଣି ପାରିବ ବୋଲି ମଧ ବୁଝାଇଦେଲେ । ବଳଦେବ ଅତି ଆନନ୍ଦରେ କ୍ଷୀରତକ ପିଇଦେଲେ ।



ଦେବୀ ଦେଇଥିବା କ୍ଷୀର ପିଇଛନ୍ତି ବୋଲି ବଳଦେବଙ୍କ ଖୁସି କହିଲେ ନ ସରେ । ଏ ଘଟଣାରେ ତାଙ୍କ ମନୋବଳ ବଢ଼ିଗଲା । ସେ ବି ଆଗ୍ରହରେ ପାଠ ପଢ଼ାପଢ଼ିରେ ଲାଗିଗଲେ । ପାଠରେ ତାଙ୍କ ମନ ଲାଗିଗଲା । ସେ ଯେଉଁ ବିଷୟ ପଢ଼ିଲେ ତାହା ଅଳ୍ପକରେ ତାଙ୍କର ମନେ ରହିଗଲା । ଅନ୍ୟମାନେ ଅତି କଷ୍ଟ ବୋଲି ଭାବୁଥିବା ପାଠକୁ ମଧ ସେ ସହଜରେ ମନେ ରଖିପାରିଲେ ।

ଦିନ କେତେଟା ଭିତରେ ଲୋକେ ତାଙ୍କୁ ଜଣେ ବଡ଼ ପାଠୁଆ ବୋଲି ଜାଣିଲେ । ପାଠପଢ଼ା ସରିଲା ପରେ ବଳଦେବ ନିଜ ଗାଁ ବଡ଼ ଖେମୁଣ୍ଡିକୁ ଫେରି ଆସିଲେ । ହେଲେ ଅଜାଙ୍କ ଘରୁ ଆସିଲା ବେଳେ ସେ ଗୋଟିଏ କଥା ମନେ ରଖିଥିଲେ ଯେମିତି ହେଉ ଅଜାଙ୍କ ପରି ବିଭିନ୍ନ ବିଷୟରେ ଜାଣିବେ । ଅଜାଙ୍କ ଭଳି ନିଜେ ମଧ୍ୟ ନାଁ କମାଇବେ ।

## ରତ୍ନମଣିକୁ ପାଇ ରତ୍ନ ହରାଇଲେ

ବଳଦେବ ପାଠପଢ଼ା ସାରି ଘରକୁ ଫେରିଲା ବେଳକୁ ବାପା ଉଜ୍ଜ୍ୱଳ ରଥ ଖୁବ୍ ବୁଢ଼ା ହୋଇଗଲେଣି । ସେ ବଳଦେବଙ୍କ ବିଭାଘର କରିବାକୁ ଭାରି ବ୍ୟସ୍ତ ହେଉଥିଲେ । ବଳଦେବ ପାଇଁ କନ୍ୟା ଖୋଜା ଚାଲିଲା । ସେତେବେଳେ ପୁରୀର ବାସେଳୀ ସାହିରେ ରାମକୃଷ୍ଣ ମିଶ୍ର ବାସ କରୁଥିଲେ । ତାଙ୍କର ସୁନ୍ଦର ଓ ଗୁଣର ଝିଅଟିଏ ଥିଲା । ନାଁ ତାଙ୍କର ରତ୍ନମଣି । ସେହି ରତ୍ନମଣି ସହିତ ବଳଦେବଙ୍କର ଶୁଭ ବିଭାହ ହେଲା । ସେତେବେଳକୁ ବଳଦେବଙ୍କର ବୟସ ଜମା ପନ୍ଦର ବର୍ଷ । ବାହାଘରର ଛଅମାସ ପରେ ବାପା ଆଖି ବୁଜିଲେ । ଆଗରୁ ତ ସେ ସ୍ନେହମୟୀ ମାଆଙ୍କୁ ହରାଇଥିଲେ । ଏବେ ବାପାଙ୍କୁ ହରାଇଲେ । ତେଣୁ ସେଠାକାର ପରିବେଶ ତାଙ୍କୁ ଆଉ ଭଲ ଲାଗିଲା ନାହିଁ । ଶେଷରେ ସେ ନିଜ ପରିବାର ସହିତ ବଡ଼ ଖେମୁଣ୍ଡି ଛାଡ଼ିଲେ ।

## ଗୁଣ ପାଇଁ ଆଦର

ବଡ଼ ଖେମୁଣ୍ଡିରେ ଥିବାବେଳେ ବଳଦେବ ଛୋଟ ଛୋଟ ଚଉପଦୀ ଲେଖିବାକୁ ଆରମ୍ଭ କଲେ । ସେଗୁଡ଼ିକୁ ନେଇ ସେ ନିଜ ବନ୍ଧୁମାନଙ୍କ ପାଖରେ ପଢ଼ି ଶୁଣାଉଥିଲେ । କ୍ରମେ ତାଙ୍କ କବିତା କଥା ଚାରିଆଡ଼େ ପ୍ରଚାରିତ ହେଲା । ସେତେବେଳକୁ ବଡ଼ ଖେମୁଣ୍ଡି ପାଖରେ ଜଳନ୍ତର ବୋଲି ଗୋଟିଏ ଦେଶୀୟ ରାଜ୍ୟ ଥିଲା । ସେତେବେଳେ ଜଳନ୍ତରରେ ରାଜା ଥିଲେ ରାମଚନ୍ଦ୍ର ଛୋଟରାୟ ।

ସେ ଭାରି ଗୁଣଗ୍ରାହୀ ଥିଲେ । ନିଜ ରାଜ ସଭାକୁ ବଡ଼ ବଡ଼ ପଣ୍ଡିତ ଓ କବିଙ୍କୁ ନିମନ୍ତ୍ରଣ କରି ଆଣୁଥିଲେ । ସେମାନଙ୍କର କବିତା ଶୁଣି ବହୁତ ଧନରତ୍ନ ଦେଇ ସମ୍ମାନିତ କରୁଥିଲେ । ସେ ପାଖ ରାଜ୍ୟ ଏହି ଯୁବ କବିଙ୍କ କବିତା ଲେଖା କଥା ଶୁଣିଲେ । ତାଙ୍କୁ ସେ ନିଜ ଦରବାରକୁ ନିମନ୍ତ୍ରଣ କଲେ । ବଳଦେବ ନିମନ୍ତ୍ରଣ ପାଇ ରାଜଦରବାରେ ପହଞ୍ଚିଲେ । ସେଠାରେ ସେ ନିଜ ରଚିତ କବିତାମାନ ପଢ଼ି ଶୁଣାଇଲେ ।

ବଳଦେବଙ୍କ କବିତା ଶୁଣି ରାଜା ବହୁତ ଖୁସି ହୋଇଗଲେ । ସେ ବଳଦେବଙ୍କୁ ନିଜ ଦରବାରରେ କବି ଭାବରେ ସ୍ଥାନ ଦେଲେ । ତା ସହିତ ତାଙ୍କ ପାଇଁ କିଛି ଜମିବାଡ଼ି ଖଞ୍ଜିଦେଲେ । ଫଳରେ ବଳଦେବ ଜଳନ୍ତରରେ ରହି ନିଜ କବିତା ସାଧନାରେ ବ୍ୟସ୍ତ ରହିଲେ ।

## ନାଁ ଆଗରେ ଉପାଧିଟିଏ

ବଳଦେବ ସରସ ସୁମଧୁର ଚଉପଦୀ ଲେଖି ଦିନକୁ ଦିନ ସମସ୍ତଙ୍କର ପ୍ରିୟପାତ୍ର ହୋଇ ପଡ଼ିଲେ । ତାଙ୍କ କବିତାରେ ସତେ ଯେମିତି କୁହୁକ ଶକ୍ତି ଥିଲା ! ତାଙ୍କ ଚଉପଦୀ ଶୁଣି ନିଜେ ରାଜା ମଧ୍ୟ ଖୁବ୍ ଖୁସି ହୋଇ ଯାଉଥିଲେ । ପ୍ରତିଦିନ ନିଜ ଦରବାରକୁ ଆସି ଏମିତି ଚଉପଦୀ ଶୁଣାଇବାକୁ ରାଜା ତାଙ୍କୁ ଆଦେଶ ଦେଲେ । ସେ ଅନେକ ଚଉପଦୀ ଲେଖି ରାଜାଙ୍କ ନାଁରେ ଭଣିତି କରୁଥିଲେ । ରାଜା ଏଥିରେ ଖୁସି ହୋଇ ତାଙ୍କୁ ଅନେକ ଧନରତ୍ନ ଦେଇ ଖୁସି କରାଉଥିଲେ ।

କବି ବଳଦେବଙ୍କର ଏ ଭଳି କବିତା ଲେଖାରେ ଖୁସି ହୋଇ ରାଜା ତାଙ୍କୁ ଗୋଟିଏ ଉପାଧି ଦେବାକୁ ଠିକ୍ କଲେ । ସେ ନିଜ ରାଜ ଦରବାରକୁ ଅନେକ ପଣ୍ଡିତଙ୍କୁ ନିମନ୍ତ୍ରଣ କଲେ । ସମସ୍ତଙ୍କ ଆଗରେ ରାଜା ବଳଦେବଙ୍କୁ 'କବିସୂର୍ଯ୍ୟ' ବୋଲି ଉପାଧିଟିଏ ଦାନ କଲେ । କବିଙ୍କ ମୁଣ୍ଡରେ ପାଟ ଶାଢ଼ି ବାନ୍ଧି ଦିଆଗଲା ।

ଏହି ଉପାଧିଟି ତାଙ୍କୁ ସବୁଦିନ ପାଇଁ ନୂଆ ନାଁରେ ପରିଚିତ କରାଇଲା । ଆଜି ମଧ୍ଯ 'କବିସୂର୍ଯ୍ୟ' କହିଲେ ବଳଦେବଙ୍କର ନାଁକୁ ହିଁ ଲୋକେ ବୁଝିଥାନ୍ତି ।

**ଜଳନ୍ତରର ଦାୟିତ୍ୱ**

କବି ବଳଦେବ ରାଜା ରାମଚନ୍ଦ୍ର ଛୋଟରାୟଙ୍କ ଅତି ପ୍ରିୟପାତ୍ର ହୋଇଗଲେ । ତେଣୁ ରାଜା ବଳଦେବଙ୍କୁ ପାଖକୁ ଡ଼ାକି ନିଜ ମନର କଥା ଜଣାଇଲେ । ଜଳନ୍ତରର ଶାସନ କାମରେ ତାଙ୍କୁ ସାହାଯ୍ୟ କରିବାକୁ ସେ ଅନୁରୋଧ କଲେ । ବଳଦେବଙ୍କ ପାଇଁ ଏହାଥିଲା ଏକ ବିରାଟ ଦାୟିତ୍ୱ । ଏହି ଦାୟିତ୍ୱ ଗ୍ରହଣ କରି ସେ ରାଜ୍ୟର ବିଭିନ୍ନ ଉନ୍ନତିମୂଳକ କାମ କରିବାରେ ଲାଗିଗଲେ ।

ନିଜର ସ୍ୱାର୍ଥକୁ ପଛରେ ପକାଇ ସେ ଲୋକମାନଙ୍କ ଉପକାରରେ ଲାଗିଲେ । ଦୀର୍ଘ ବାରବର୍ଷ କାଳ ସେ ଏହି ଦାୟିତ୍ୱରେ ଥିଲେ । ତାଙ୍କ କାମ ଲୋକେ ଖୁବ୍ ପସନ୍ଦ କରିଥିଲେ ।

**କବିତା କଳି ତୁଟାଇ ଦେଲା :**

ଜଳନ୍ତର ରାଜ୍ୟ ପାଖକୁ ଲାଗି ମଞ୍ଜୁଷା ବୋଲି ଆଉ ଗୋଟିଏ ଦେଶୀୟ ରାଜ୍ୟ ଥିଲା । ଏହି ଦୁଇଟି ରାଜ୍ୟ ମଧ୍ୟରେ ବହୁତ ଦିନରୁ ଘୋର ଶତ୍ରୁତା ଥିଲା । ଏହାଦ୍ୱାରା ଉଭୟ ରାଜ୍ୟର ଅନେକ କ୍ଷୟକ୍ଷତି ହେଉଥିଲା । ଏ କଥା କବି ବଳଦେବଙ୍କ ମନକୁ ବହୁତ ଆଘାତ ଦେଉଥିଲା । ତେଣୁ ସେ ମନେ ମନେ ଭାବିଲେ ଉଭୟ ରାଜ୍ୟ ମଧ୍ୟରେ ଥିବା ଶତ୍ରୁତା ତୁଟି ଯିବା ଦରକାର ନୋହିଲେ, ନିରୀହ ପ୍ରଜାଗୁଡ଼ିକ ଖାଲି ଦୁଃଖ ସହିବେ । ସେତେବେଳେ ବଳଦେବଙ୍କ ଖ୍ୟାତି ଜଣେ କବି ଭାବରେ ଚାରିଆଡ଼େ ବ୍ୟାପିଯାଇଥାଏ । ମଞ୍ଜୁଷାର ରାଜା. ବଳଦେବଙ୍କର ଖ୍ୟାତି ଶୁଣି ତାଙ୍କ ସହିତ ବନ୍ଧୁ ହେବା ପାଇଁ ମନ ବଳାଇଲେ । ଏହି ସୁଯୋଗକୁ ତ ବଳଦେବ ବହୁତ ଆଗରୁ ଅପେକ୍ଷା କରିଥିଲେ । ତେଣୁ

ସେ ମଞ୍ଜୁଷା ରାଜ୍ୟକୁ ଯାଇ ନିଜ ରଚିତ କବିତାମାନ ଆଲୋଚନା କରିବାରେ ଲାଗିଲେ ।

କବିଙ୍କର ସୁମଧୁର ଚଉପଦୀଗୁଡ଼ିକ ଶୁଣି ମଞ୍ଜୁଷାର ରାଜା ବେଶ୍ ଖୁସି ହୋଇଗଲେ । ତାଙ୍କ ଚେଷ୍ଟାରେ ଦୁଇରାଜା ପରସ୍ପରର ବନ୍ଧୁ ପାଲଟିଗଲେ । ଉଭୟ ରାଜ୍ୟର ରାଜା ନିଜ ନିଜ ମଧ୍ୟରେ କଳି ଭୁଲିଗଲେ ।

## ପୁଣି ଆଠଗଡ଼ ଆସିଲେ

ଆଠଗଡ଼ର ଅଜାଙ୍କ ଘରେ ପିଲାଦିନ କଟାଇ ବଳଦେବ ନିଜ ଗାଁକୁ ଚାଲି ଆସିଥିଲେ । ଆଠଗଡ଼ର ଜଣେ ଜଣାଶୁଣା ପଣ୍ଡିତ ନିଧି ରଥ କିଛି କାମରେ ଆସିଥିଲେ । ତାଙ୍କର ବଳଦେବଙ୍କ ସହିତ ପରିଚୟ ହେଲା । ସେ ନିଜ ରାଜ୍ୟକୁ ଫେରିଯାଇ ରାଜା ବାଲୁକେଶ୍ୱର ହରିଚନ୍ଦନଙ୍କ ଆଗରେ ବଳଦେବଙ୍କ ଗୁଣଗାନ କରିଥିଲେ । ବାଲୁକେଶ୍ୱର ଜଣେ ଗୁଣଗ୍ରାହୀ ରାଜାଥିଲେ । ସେ ଏପରି ଜଣେ କବିଙ୍କ ବିଷୟରେ ଶୁଣି ଆଉ ଥୟ ଧରି ରହିପାରିଲେ ନାହିଁ । ସଙ୍ଗେ ସଙ୍ଗେ ନିଜ ରାଜ୍ୟକୁ ଆସିବାପାଇଁ ବଳଦେବଙ୍କ ପାଖକୁ ନିମନ୍ତ୍ରଣ ପଠାଇଲେ । ବଳଦେବ ମନା କରିପାରିଲେ ନାହିଁ । ଜଳନ୍ତର ରାଜାଙ୍କଠାରୁ ଅନୁମତି ନେଇ ସେ ଆଠଗଡ଼ ଗଲେ ।

ଏଥରର ଆଠଗଡ଼ ଯିବାଟା ଥିଲା ପଣ୍ଡିତ ହିସାବରେ । ଏହି ମାଟିରେ ସେ ପିଲାଦିନେ ବିଦ୍ୟା ଶିକ୍ଷା କରି ଥିଲେ । ସେହି ରାଜ୍ୟର ନିମନ୍ତ୍ରଣ ପାଇ ସେ ବିଦ୍ୟା ଆଲୋଚନା କରିବା ପାଇଁ ଗଲେ । ଏହା ତାଙ୍କ ପାଇଁ ବଡ଼ ଗୌରବର କଥା ଥିଲା । ସେଠାକାର ରାଜା ମଧ୍ୟ ଜଣେ ସଂଗୀତ ପ୍ରେମୀ ଥିଲେ । ବଳଦେବଙ୍କୁ ପାଖରେ ପାଇ ତାଙ୍କ ସହିତ ଅନେକ ସମୟ ସେ ସାହିତ୍ୟ ସଂଗୀତ ଆଲୋଚନାରେ କଟାଇ ଦେଲେ । ବଳଦେବ ମାତ୍ର ଛଅମାସ ପାଇଁ ଜଳନ୍ତରରୁ ଛୁଟି ନେଇ ଆଠଗଡ଼କୁ ଆସିଥିଲେ । ସେ ପୁଣି ନିଜ ରାଜ୍ୟକୁ ଫେରି ଆସିଲେ ।

ହେଲେ ବାଳୁକେଶ୍ୱରଙ୍କର ସ୍ନେହ ଶ୍ରଦ୍ଧା ତାଙ୍କୁ ବେଶୀ ଦିନ ଜଙ୍ଗଲରରେ ରଖାଇ ଦେଲା ନାହିଁ । କିଛିଦିନ ପରେ ସେ ପୁଣି ଆଠଗଡ଼ ଚାଲି ଆସିଲେ ।

## 'ଚମ୍ପୂ' କାବ୍ୟ ଲେଖାଗଲା

ଆଠଗଡ଼ର ରାଜା ବାଳୁକେଶ୍ୱର ହରିଚନ୍ଦନ ଜଣେ ପରମ କୃଷ୍ଣ ଭକ୍ତ ଥିଲେ । ତେଣୁ ରାଧାକୃଷ୍ଣଙ୍କ ବିଷୟରେ କେତେକ କବିତା ଲେଖି ରାଜାଙ୍କୁ ଉପହାର ଦେବାକୁ ବଳଦେବ ମନ ବଳାଇଲେ । ଏହି କାରଣରୁ ସେ ଏକ ପ୍ରସିଦ୍ଧ କାବ୍ୟ ଲେଖିଥିଲେ । ତାହା 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ନାମରେ ପ୍ରସିଦ୍ଧ । 'କ' ଠାରୁ 'କ୍ଷ' ଯାଏ ପ୍ରତି ଅକ୍ଷରକୁ ମୂଳରେ ରଖି ଗୋଟିଏ ଗୋଟିଏ ଚଉପଦୀ ଲେଖାଗଲା । ଏଗୁଡିକୁ ସେ ରାଜାଙ୍କ ନାମରେ ଭଣତି କରିଥିଲେ ।

ଏହା କେବଳ ରାଧାକୃଷ୍ଣଙ୍କର ଗୁଣ ବର୍ଣ୍ଣନା ମୂଳକ ଗୀତ ନୁହେଁ; ଏହା ସଂଗୀତ ଜଗତର ଗୋଟିଏ ଗୋଟିଏ ମହାମୂଲ୍ୟ ରତ୍ନ । ଆଜି ତାହା ପ୍ରତ୍ୟେକ ସଂଗୀତ ପ୍ରେମୀଙ୍କୁ ଆନନ୍ଦ ଦେଉଛି ।

## ପୁରୀରେ କବିତା ଆଲୋଚନା

ସେତେବେଳେ ପୁରୀରେ ରାଜା ଥାଆନ୍ତି ମୁକୁନ୍ଦ ଦେବ । ତାଙ୍କ ଦରବାର ପଣ୍ଡିତମାନଙ୍କର ପୀଠସ୍ଥଳୀ ଭାବରେ ବେଶ୍ ପ୍ରସିଦ୍ଧି ଲାଭ କରିଥିଲା । ପୁରୀ ରାଜଦରବାର ପଣ୍ଡିତମାନଙ୍କ ପରୀକ୍ଷାର ଉପଯୁକ୍ତ ସ୍ଥାନ ଭାବରେ ଗଣାଯାଉଥିଲା । ପୁରୀରେ ସମ୍ମାନ ପାଇ ନଥିବା ପଣ୍ଡିତମାନଙ୍କୁ ଲୋକେ ବଡ଼ ବୋଲି ବିଚାରୁ ନଥିଲେ ।

ଏଥିପାଇଁ ପ୍ରତ୍ୟେକ କବି, ପଣ୍ଡିତ ପୁରୀରେ ନିଜର ଜ୍ଞାନ ପରୀକ୍ଷା ଦେବାପାଇଁ ମନ ବଳାଉଥିଲେ ।

ଏହି ସମୟରେ ବଳଦେବ ନିଜ ଝିଅ ପାଇଁ ବରପାତ୍ର ଖୋଜିବାକୁ ପୁରୀ ଆସିଥିଲେ । ସେ ନିଜର ବନ୍ଧୁ ଜଗନ୍ନାଥ ମହାସୁଆରଙ୍କ ଘରେ ଯାଇ ରହିଲେ । ବନ୍ଧୁ ଘରେ ଥିବାବେଳେ ରାଜାଙ୍କ ଦରବାରକୁ ଯିବା ପାଇଁ ତାଙ୍କର ଭାରି ଇଚ୍ଛା ହେଲା । ହେଲେ ଯିବେ ବା କିପରି ? ସେ ତ ପୁରୀ ଦରବାରରେ ନୂଆ ! ତା ଛଡ଼ା ପୁରୀର ପଣ୍ଡିତମାନେ ବାହାରର ପଣ୍ଡିତମାନଙ୍କୁ ଜମା ପାଖରେ ପୂରାଇ ଦେଉ ନଥିଲେ । ଯିଏ ଯେତେ ଭଲ ନୂଆ ଗୀତଟିଏ ଲେଖିଥାଉ, ତାକୁ ପୁରୁଣା କହି ଫେରାଇ ଦେଉଥିଲେ । ତେଣୁ ଯେତେ ଚେଷ୍ଟା କଲେ ବି ରାଜଦରବାରକୁ ଯିବାଟା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ ।

ପ୍ରତିଦିନ ଠାକୁରଙ୍କୁ ଦର୍ଶନ କଲାବେଳେ ନୂଆ ନୂଆ ଗୀତ ଲେଖି ଠାକୁରଙ୍କ ପାଖରେ ଗାଉଥିଲେ । ଗୀତଗୁଡ଼ିକର ଭାବ ଅତି ସରଳ ଥିଲା । ସୁମଧୁର ସ୍ୱରରେ ଏଇ ଗୀତଗୁଡ଼ିକୁ ଗାଇବା ଫଳରେ ଲୋକମାନେ ତାଙ୍କ ନାଁ ମଧ୍ୟ ଜାଣିଗଲେ । ଠିକ୍ ଏହି ସମୟରେ ସେ ଗୋଟିଏ ନୂଆଗୀତ ଲେଖି ସେଥିରେ ରାଜାଙ୍କ ନାମରେ ଭଣତି କରି ପଠାଇଦେଲେ । ରାଜା ସେହି କବିତାଟିକୁ ପଢ଼ି ବହୁତ ଖୁସି ହୋଇଗଲେ । ଏଥି ସହିତ ତାଙ୍କୁ ଲକ୍ଷ୍ମୀମନ୍ଦିର ନିକଟରେ ମଙ୍ଗଳ ଆଳତିବେଳେ ଦେଖା କରିବା ପାଇଁ ମଧ୍ୟ ଖବର ପଠାଇଲେ ।

ତା' ପରଦିନ କବିଙ୍କର ରାଜାଙ୍କ ସହିତ ଭେଟ ହେଲା । ଉଭୟେ ମିଶି ମନ୍ଦିର ଭିତରକୁ ଦର୍ଶନ କରିବା ପାଇଁ ଗଲେ । ମଙ୍ଗଳ ଆଳତି ଦର୍ଶନ ସାରି ଫେରିବାବେଳେ ରତ୍ନସିଂହାସନର କିଛି ଦୂରରେ ଥାଇ ରାଜା କହିଲେ- ''ଆପଣ ପରା 'କବିସୂର୍ଯ୍ୟ' ଉପାଧି ପାଇଛନ୍ତି ? ଆଚ୍ଛା, ବର୍ତ୍ତମାନ ଲକ୍ଷ୍ମୀ ଓ ବିଷ୍ଣୁଙ୍କର ଏହି ଅବସ୍ଥାକୁ ଲକ୍ଷ୍ୟ କରି ଗୀତଟିଏ ଲେଖି ବୋଲିଲେ ।'' ବଳଦେବ ଟିକେ ବି ଡେରି ନକରି ଗୀତଟିଏ ବୋଲିଥିଲେ । ସେଇ ଗୀତଟିକୁ ମଧ୍ୟ ସେ ରାଜାଙ୍କ ନାମରେ ଭଣତି କରିଥିଲେ । ଏଥିରେ ରାଜା ବହୁତ ଖୁସି ହୋଇଗଲେ ।

ରାଜାଙ୍କ ଗହଣରେ ଥିବା ପଣ୍ଡିତମାନେ ତାଙ୍କ କବିତାକୁ ଦେଖି ଏହା ଆଗରୁ ଲେଖାଯାଇଛି ବୋଲି କହୁଥିଲେ । ଏବେ ବଳଦେବଙ୍କ ପ୍ରତିଭା ଆଗରେ ସେମାନଙ୍କର ମୁଣ୍ଡ ନଇଁଗଲା । ତା'ପରଠାରୁ ବଳଦେବଙ୍କୁ ରାଜ ଦରବାରକୁ ଯିବାପାଇଁ ସୁଯୋଗ ମିଳିଲା । ଏଥର ପୁରୀ ରାଜାଙ୍କ ଦରବାରରେ ସେ ସଂଗୀତ, ସାହିତ୍ୟ ଆଲୋଚନାରେ ନିଜକୁ ହଜାଇ ଦେଲେ ।

## କବିଙ୍କ ମୁଣ୍ଡରେ ପାଟ ଶାଢ଼ି

ସେହି ସାକ୍ଷାତ୍ ପରେ ରାଜା ବଳଦେବଙ୍କ ଅସାଧାରଣ ପ୍ରତିଭା ସମ୍ପର୍କରେ ଜାଣିଲେ । ତାଙ୍କ କବିତ୍ୱକୁ ସ୍ୱୀକୃତି ଜଣାଇବା ପାଇଁ ସେ ଗୋଟିଏ ଉପାଧି ଦେବାକୁ ଠିକ୍ କଲେ । ଦିନେ ଦରବାରରେ ତାଙ୍କୁ କହିଲେ-"ଦେଖ କବି ! ଆପଣ ତ ଜଣେ ସାମନ୍ତ ରାଜାଙ୍କଠାରୁ ଉପାଧିଟିଏ ଲାଭ କରିଛନ୍ତି । ଆମଠାରୁ ଆଜି ଆଉ ଏକ ଉପାଧି ଗ୍ରହଣ କରନ୍ତୁ ।" ଉପାଧି ପାଇବା ପାଇଁ ତାଙ୍କର ଏତେ ଲୋଭ ନଥିଲା । ତେଣୁ ସେ ରାଜାଙ୍କୁ ଅତି ବିନୟ ହୋଇ କହିଲେ- "ମହାରାଜ !ମୋର ତ ଏଇ ଉପାଧି ଚାରିଆଡ଼େ ଜଣାଶୁଣା ହୋଇଗଲାଣି । ଆଉ ଅଧିକ ଉପାଧି ପାଇଲେ କି ଲାଭ ହେବ ? ଯଦି ମୋ ପ୍ରତି ଆପଣଙ୍କର ଅନୁଗ୍ରହ ହେଉଛି; ତେବେ ଏଇ ଉପାଧିଟିକୁ ଆପଣଙ୍କର ଉପାଧିବୋଲି ମାନି ନିଅନ୍ତୁ ।"

ସେ କଥା ଶୁଣି ରାଜା ଅତ୍ୟନ୍ତ ଖୁସି ହୋଇ ଗଲେ । ସଙ୍ଗେ ସଙ୍ଗେ ସେ ପାଟ ଶାଢ଼ି ଅଣାଇ ନିଜ ହାତରେ କବିଙ୍କ ମୁଣ୍ଡରେ ବାନ୍ଧି ଦେଲେ । 'କବିସୂର୍ଯ୍ୟ' ଉପାଧିଟିକୁ ନିଜର ଉପାଧି ବୋଲି ସ୍ୱୀକାର କରି ନେଲେ ।

## କେଡ଼େ ବିଚକ୍ଷଣ ବୁଦ୍ଧି

ଶ୍ରୀ ମନ୍ଦିରରେ ଠାକୁରଙ୍କ ମଙ୍ଗଳ ଆଳତି ଦର୍ଶନ କଲାବେଳେ କବିଙ୍କର ତ ରାଜାଙ୍କ ସହିତ ଭେଟ ହୋଇଥିଲା । ସେତିକିବେଳେ ରାଜା କବିଙ୍କୁ ଗୋଟିଏ

ପ୍ରଶ୍ନ ପଚାରିଥିଲେ । ବଳଦେବଙ୍କୁ ସେଇ ପ୍ରଶ୍ନର ଉତ୍ତର ଦେବାକୁ ଆଠ ଦିନ ସମୟ ଦେଇଥିଲେ । ମାତ୍ର ସେ ଆଠଦିନ ସମୟ ନେଲେ ନାହିଁ । ସେହି ଦିନ ରାଜା ଶ୍ରୀ ଜୀଉଙ୍କ ଦର୍ଶନ ସାରି ସିଂହଦ୍ୱାର ନିକଟରେ ପହଞ୍ଚିଲାବେଳକୁ ବଳଦେବ ପ୍ରଶ୍ନର ଉତ୍ତରଟିକୁ କହିଦେଲେ । ସେ ଉତ୍ତର ରାଜାଙ୍କର ମନକୁ ବେଶ୍ ପାଇଥିଲା ।



ଏଥିରେ ରାଜା ଆଶ୍ଚର୍ଯ୍ୟ ହୋଇଗଲେ । କବିଙ୍କ ବୁଦ୍ଧିକୁ ସେ ବହୁତ ପ୍ରଶଂସା କରିଥିଲେ । ସେତିକିବେଳେ ତାଙ୍କ ମୁହଁରୁ ଆପେ ଆପେ ବାହାରି ଆସିଲା- ''ଧନ୍ୟ କବି ବଳଦେବ, ଧନ୍ୟ ତୁମର ବୁଦ୍ଧି !''

## ଶ୍ରୀ ମନ୍ଦିର ରେ ଚାମର ସେବା

କବି ବଳଦେବଙ୍କର ଯଶ ଚାରିଆଡ଼େ ବ୍ୟାପିଗଲା । ଏଥିରେ ପୁରୀର ପଣ୍ଡିତମାନେ ହିଂସାରେ ଜଳିଗଲେ । ସେମାନେ ସବୁବେଳେ ବଳଦେବଙ୍କୁ ହଇରାଣ କରିବାକୁ ଚାହିଁଲେ । ଏ କଥା ରାଜାଙ୍କ କାନକୁ ଗଲା । ସେ ଭାରି ମନ ଦୁଃଖ କଲେ । ନିଜର ଗର୍ବୀ ପଣ୍ଡିତମାନଙ୍କୁ ଉଚିତ ଶିକ୍ଷା ଦେବାକୁ ସେ ମନେ ମନେ ଠିକ୍ କଲେ ।

ରାଜା ଦିନେ ଦରବାରରେ ପଣ୍ଡିତମାନଙ୍କର ଗୋଟିଏ ସଭାର ଆୟୋଜନ କଲେ । ସେହି ସଭାକୁ ବଳଦେବଙ୍କୁ ମଧ୍ୟ ନିମନ୍ତ୍ରଣ କରାଗଲା । ନାନା ପ୍ରକାର ପାଠ ବିଷୟରେ ଆଲୋଚନା ହେଲା । ଆଲୋଚନାବେଳେ ପୁରୀର ପଣ୍ଡିତମାନେ ବଳଦେବଙ୍କୁ ନାନା ପ୍ରକାର କଠିନ ପ୍ରଶ୍ନ ପଚାରୁଥାନ୍ତି । ସେଥିରେ ସେ ବ୍ୟସ୍ତ ନ ହୋଇ ସମସ୍ତ ପ୍ରଶ୍ନର ଉତ୍ତର ଦେଉଥାନ୍ତି । ପଣ୍ଡିତମାନେ ଆଉ ପ୍ରଶ୍ନ ପଚାରିବାକୁ ସାହସ କଲେ ନାହିଁ । କବିସୂର୍ଯ୍ୟଙ୍କର ପ୍ରତିଭା ଆଗରେ ସେମାନେ ହାରମାନିଲେ ।

ଦିନେ ପଣ୍ଡିତମାନେ ତାଙ୍କର ନୂଆ କବିତାକୁ ପୁରୁଣା ବୋଲି କହି ଫେରାଇ ଦେଉଥିଲେ । ମାତ୍ର ସେମାନେ ପୁଣି କବିସୂର୍ଯ୍ୟଙ୍କର ପ୍ରତିଭା ଆଗରେ ହାରମାନିଲେ । ତା' ପରଠାରୁ ନିୟମିତ କବିତା ଆଲୋଚନା ପାଇଁ ତାଙ୍କୁ ଦରବାରରେ ମଧ୍ୟ ସୁଯୋଗ ମିଳିଲା । ଏଥି ସହିତ କବିସୂର୍ଯ୍ୟଙ୍କୁ ଜଗନ୍ନାଥ ମନ୍ଦିରରେ ଚାମର ସେବା ମିଳିଲା । ଏହି ସେବା ସମସ୍ତଙ୍କୁ ଦିଆଯାଇ ନଥାଏ । ଏଥି ସହିତ ସେ ଅନେକ ଧନରତ୍ନ ମଧ୍ୟ ରାଜାଙ୍କଠାରୁ ପାଇଲେ । ଏହାର କିଛିଦିନ ପରେ ସେ ପୁରୀରୁ ଜଳନ୍ତର ରାଜ ଦରବାରକୁ ଫେରିଗଲେ ।

## କବି ହୋଇଗଲେ ସମସ୍ତ ଲୋକେ

ଜଳନ୍ତରର ରାଜା ରାମଚନ୍ଦ୍ର ଛୋଟରାୟଙ୍କ ମୃତ୍ୟୁ ପରେ ସେ ଆଉ ସେଠାରେ ରହିବାକୁ ପସନ୍ଦ କଲେ ନାହିଁ। ତେଣୁ ସେ ପୁଣି ଆଠଗଡ଼କୁ ଫେରି ଆସିଲେ। ଆଠଗଡ଼ର ରାଜା ଜଣେ ଜ୍ଞାନ ପ୍ରିୟ ରାଜା ଥିଲେ। ତାଙ୍କ ଦରବାରକୁ କେହି ନୂତନ କବିତା ରଚନା କରି ଆଣି ଦେଲେ, ସେ ତାକୁ ଅନେକ ଉପହାର ଦେଉଥିଲେ। ରାଜାଙ୍କର ଏହି କାମକୁ ଦେଖି ବଳଦେବ ଅନେକ ସମାଲୋଚନା ମୂଳକ କବିତା ଲେଖିଲେ। ସେଥି ମଧ୍ୟରୁ 'ଜଗତେ କେବଳ' କବିତା ଗୋଟିଏ। ଏହି କବିତାଟି ସମସ୍ତଙ୍କ ମନକୁ ଛୁଇଁଲା ପରି କବିତାଟିଏ।

ଏହି କବିତାକୁ ସେ ରାଜ ଦରବାରରେ ପଢ଼ିଲେ। ରାତାରାତି କବି ହୋଇଥିବା ଲୋକଙ୍କୁ ଏହା ବାଧିଲା।

## ଘରୋଇ ଶିକ୍ଷକ ପଦବୀ

ଆଠଗଡ଼ରେ ରହିବା ବେଳେ ବଳଦେବଙ୍କର ପାଣ୍ଡିତ୍ୟ, ବୁଦ୍ଧିରେ ନିକଟବର୍ତ୍ତୀ ରାଜାମାନେ ବେଶ୍ ଆକୃଷ୍ଟ ହୋଇଥିଲେ। ଏତିକିବେଳେ ପାରଳାଖେମୁଣ୍ଡିର ରାଜା ପୁରୁଷୋତ୍ତମ ନରାୟଣ ଦେବଙ୍କର ମୃତ୍ୟୁ ହେଲା। ତାଙ୍କ ପୁଅ ଜଗନ୍ନାଥ ଗଜପତି ନାରାୟଣ ଦେବ ଅତି ପିଲା। ତେଣୁ ରାଜା ବିନା ରାଜ୍ୟରେ ବହୁତ ବିଶୃଙ୍ଖଳା ଦେଖା ଦେଲା। ସେତିକିବେଳେ ଗଞ୍ଜାମର କଲେକ୍ଟର କବିସୂର୍ଯ୍ୟଙ୍କୁ ନାବାଳକ ରାଜାଙ୍କର ଶିକ୍ଷକ ଭାବରେ ନିଯୁକ୍ତି ଦେଲେ। ଏହି ନିଯୁକ୍ତି ପାଇ ସେ ପାଞ୍ଚବର୍ଷ ପର୍ଯ୍ୟନ୍ତ ନାବାଳକ ରାଜାଙ୍କର ଘରୋଇ ଶିକ୍ଷକ ଭାବରେ କାର୍ଯ୍ୟ କରିଥିଲେ। ଏହି ଘରୋଇ ଶିକ୍ଷକ ପଦବୀରେ ଥାଇ ସେ ନାବାଳକ ରାଜାଙ୍କୁ ଅନେକ ବିପଦରୁ ରକ୍ଷା କରିଥିଲେ।

## ଦୁଇ କବିଙ୍କର ମହାମିଳନ

ଆଉ ଥରକର କଥା । ପୁରୀରେ ବଳଦେବ ଗରୁଡ ସ୍ତମ୍ଭ ପାଖରେ ଠିଆ ହୋଇ ଜଗନ୍ନାଥଙ୍କୁ ଦର୍ଶନ କରୁଥାନ୍ତି । ଏତିକିବେଳେ କବି ଯଦୁମଣିଙ୍କ ପୁଅର ମୃତ୍ୟୁ ହୋଇଯାଇଥାଏ । ତେଣୁ ଏପରି ଦୁଃଖକୁ ଭୁଲିବା ପାଇଁ ସେ ପୁରୀକୁ ଆସିଥାନ୍ତି । ସେ ମଧ୍ୟ ଜଗନ୍ନାଥଙ୍କ ପାଖରେ ଥାଇ ନିଜର ଦୁଃଖ ଜଣାଇ ଭଜନଟିଏ ଗାଉଥିଲେ । ଭଜନ ଗାଇଲାବେଳେ ତାଙ୍କର ଆଖିରୁ ଧାର ଧାର ହୋଇ ଲୁହ ବହିଯାଉଥାଏ । କବିତାର ଶେଷ ପଦରେ ନିଜର ନାଁକୁ ଲଗାଇ ଭଣିତି ପଦଟି ଗାଇଲାବେଳେ ବଳଦେବ ତାହା ଶୁଣି ଚମକି ପଡ଼ିଲେ । ଆରେ ଏ କ'ଣ ସେଇ ମୁଗୁରିଆ ରସିକ କବି ଯଦୁମଣି !



ସେଠାରେ ଦୁଇକବି ପରସ୍ପରକୁ ଜାଣିବାର ସୁଯୋଗ ପାଇଲେ । ଦୁହେଁ ଦୁହିଁଙ୍କୁ ବେଶ୍ ଶ୍ରଦ୍ଧା କଲେ । ଯଦୁମଣିଙ୍କ ପୁଅର ମୃତ୍ୟୁ ଖବର ଶୁଣି ବଳଦେବ ଦୁଃଖରେ ସମବେଦନା ଜଣାଇଲେ । ପୁରୀ ଗହଣିକାଳରେ ଦୁଇ କବିଙ୍କ ମଧ୍ୟରେ ଅନେକ ଶାସ୍ତ୍ର ବିଷୟରେ ଆଲୋଚନା ହେଲା । ଏଇଠାରେ ହାସ୍ୟ କବିଙ୍କ ସଂସ୍ପର୍ଶରେ ଆସି କବି ବଳଦେବ ନିଜର 'ହାସ୍ୟକଲ୍ଲୋଳ' ନାମକ ହାସ୍ୟରସଭରା କାବ୍ୟଟି ଲେଖିବାର ପ୍ରେରଣା ପାଇଥିଲେ ।

## ଦେବାନ୍ ପଦରୁ ବିଦାୟ

ସେତେବେଳକୁ ଓଡ଼ିଶାରେ ଇଂରେଜମାନଙ୍କର ଶାସନ ଆରମ୍ଭ ହୋଇଯାଇଥାଏ । ତେଣୁ ଇଂରେଜ ଶାସକମାନେ କବି ବଳଦେବଙ୍କର ଶାସନ ପଦ୍ଧତି କଥା ମଧ୍ୟ ଶୁଣୁଥାନ୍ତି । କବିଙ୍କୁ ସେଥିପାଇଁ ପାରଳାଖେମୁଣ୍ଡିର ଦେବାନ୍ ରୂପେ ବଦଳି କରି ଅଣାଗଲା । ହେଲେ ସେତେବେଳକୁ ପାରଳାଖେମୁଣ୍ଡିରେ ଗୃହଯୁଦ୍ଧ ଆରମ୍ଭ ହୋଇଯାଇଥାଏ । ତା'ଛଡ଼ା ସେଠାରେ ପ୍ରଜା ଆନ୍ଦୋଳନ ତୀବ୍ର ରୂପ ଧାରଣ କରିଥିଲା । ରାଜା ଶାସନ କରିବାରେ ଅପାରଗ ଥିଲେ । ସେ ନିଜ ରାଜ୍ୟର ଶାସନକଳକୁ ସୁଧାରି ପାରିଲେ ନାହିଁ । ସେଠାରେ ସାଧାରଣ ଜଣେ ଦେବାନ୍ ବା କ'ଣ କରିପାରିବେ ? ଏହି ପରିସ୍ଥିତିରେ କବି ନୀରବ ରହିବାକୁ ବାଧ୍ୟ ହେଲେ । ମାତ୍ର ଇଂରେଜ ସରକାର ନିଜର ସୈନ୍ୟବଳ ଦ୍ୱାରା ଏ ଆନ୍ଦୋଳନକୁ ଦୃଢ଼ ଭାବରେ ଦମନ କରିଥିଲେ । ଶେଷରେ କବିଙ୍କୁ ଦେବାନ୍ ପଦରୁ ବିଦାୟ ନେବାକୁ ପଡ଼ିଲା । କ୍ଷମତାର ଭାର ସିନା ଚାଲିଗଲା । ହେଲେ କବିତା ଲେଖାରୁ ସେ ଓହରି ଯାଇ ନଥିଲେ ।

## ବିନା ଔଷଧରେ ରୋଗ ଭଲ

ପାରଳାଖେମୁଣ୍ଡିରେ ଥିବାବେଳେ ଆଠଗଡ଼ର ରାଜା ଏକ ଦୁଷ୍ଟ ବ୍ରଣ ରୋଗରେ ପୀଡ଼ିତ ହେଲେ । ରାଜାଙ୍କ ବିଷୟରେ ଏ ଦୁଃସମ୍ବାଦଟି ପାଇ

ବଳଦେବ କି ଥୟ ହୋଇ ରହିପାରନ୍ତି । ସେ ଯଥା ଶୀଘ୍ର ଆଠଗଡ଼ରେ ଯାଇ ପହଞ୍ଚିଲେ । ସେତେବେଳକୁ ରାଜା ରୋଗରେ ପୀଡ଼ିତ ହୋଇ ମରଣ ସହିତ ସଂଗ୍ରାମ କରୁଥାନ୍ତି । ଯେତେ ଚେଷ୍ଟା କଲେ ମଧ ସେ ରୋଗ ଭଲ ହେଉ ନଥାଏ । ଏ ପରିସ୍ଥିତିରେ ଅସ୍ତ୍ରୋପଚାର କରିବା ପାଇଁ ବଳଦେବ ରାଜାଙ୍କୁ ପରାମର୍ଶ ଦେଲେ । ରାଜା ସେ କଥା ଶୁଣି କହିଲେ, "ମରିଯିବି ପଛେ, ଅସ୍ତ୍ରୋପଚାର କଷ୍ଟକୁ ଜମା ସହିପାରିବି ନାହି ।" ତେବେ ଏ ବ୍ରଣ ପୁଣି ଭଲ ହେବ କିପରି ? କବିଙ୍କ ମୁଣ୍ଡରେ ହଠାତ୍ ବୁଦ୍ଧିଟିଏ ଜୁଟିଲା । ସେ ସଙ୍ଗେ ସଙ୍ଗେ ହସକଥା ପୂରିଥିବା ଗପଟିଏ କହିଲେ । ଗପଟିକୁ ଶୁଣୁ ଶୁଣୁ ରାଜା ଖାଲି ହସିବାରେ ଲାଗିଲେ । ଏପରି ହସିବା ଦ୍ୱାରା ତାଙ୍କର ସେଇ ଦୁଷ୍ଟ ବ୍ରଣଟି ଫାଟିଗଲା । ତା' ସହିତ ରାଜା ମଧ ସେହି ରୋଗ କଷ୍ଟରୁ ରକ୍ଷା ପାଇଗଲେ ।

ବିନା ଔଷଧରେ କଷ୍ଟଦାୟକ ରୋଗରୁ ଭଲ ହୋଇ ଥିବାରୁ ରାଜା ଖୁସି ହୋଇ ବଳଦେବଙ୍କ ପାଇଁ ଶହେ ଭରଣ ଧାନ ଅମଳ ହେଲା ଭଳି ଧାନ ଜମି ଓ ମାସକୁ ଶହେ ଟଙ୍କା ବୃତ୍ତି ଖଞ୍ଜି ଦେଲେ । ବଳଦେବ ମଧ ନିଜର ପ୍ରିୟରାଜାଙ୍କୁ ଏମିତି ଏକ ରୋଗ କଷ୍ଟରୁ ରକ୍ଷା କରିଥିବାରୁ ନିଜକୁ ଧନ୍ୟ ମନେ କଲେ ।

### ରାଣୀଙ୍କ ଅନୁରୋଧ ରକ୍ଷା

ବଳଦେବ ଖାଲି ରାଜାଙ୍କ ମନକଥା ବୁଝି କବିତା ଲେଖୁଥିଲେ ତାହା ନୁହେଁ, ସେ ମଧ ରାଣୀଙ୍କୁ ସମ୍ମାନ ଦେଉଥିଲେ । ଆଠଗଡ଼ରେ ଥିବାବେଳେ ସେ ବର୍ଷ ବାଳି ତୃତୀୟା ବ୍ରତ ପଡ଼ିଲା । ବାଳି ତୃତୀୟା ବ୍ରତ କଥା ତ ସଂସ୍କୃତରେ ଲେଖା ଥିଲା । ରାଣୀ ଭାବିଲେ ତାକୁ କିଏ ଓଡ଼ିଆରେ ଲେଖି ଦିଅନ୍ତା ଯଦି ବହୁତ ଓଡ଼ିଆଣୀଙ୍କ ଉପକାରରେ ଲାଗି ପାରନ୍ତା । ଏହା ଭାବି ନିଜର ସଭାକବି ବଳଦେବଙ୍କୁ ପାଖକୁ ଡକାଇ ମନର କଥା ଜଣାଇଲେ । ଦିନ କେତେଟା ଯାଇନାହିଁ କବି ସଂସ୍କୃତ ବାଳିତୃତୀୟା ବ୍ରତ କଥାକୁ ସରଳ ଓଡ଼ିଆ ଭାଷାରେ

ଲେଖି ଦେଲେ । ସେ ଏହାକୁ ରାଣୀଙ୍କ ପାଖରେ ଭେଟି ଦେଲେ । ତାକୁ ପଢ଼ି
ରାଣୀ ବହୁତ ଖୁସି ହୋଇ ଗଲେ । କବିଙ୍କୁ ମଧ୍ୟ ବହୁତ ଧନରତ୍ନ ଉପହାର



ଦେଲେ । ଖାଲି ସେତିକି ନୁହେଁ, ସେହିଦିନଠାରୁ ବାଲିତୃତୀୟା ବ୍ରତ କରୁଥିବା ସ୍ତ୍ରୀ ଲୋକମାନେ, ତାକୁ ପଢ଼ି ଶୁଣି ବହୁତ ଆନନ୍ଦ ପାଉଛନ୍ତି । ସମସ୍ତଙ୍କ ମୁହଁରେ କବିଙ୍କର ଭୂରି ଭୂରି ପ୍ରଶଂସା ପ୍ରଚାର ହେବାରେ ଲାଗିଲା ।

## କାବ୍ୟଟି ଅଧା ରହିଲା

ଜଳନ୍ତର ରାଜ୍ୟର ରାଜା ଗୋଟିଏ ବାପା ମାଆ ଛେଉଣ୍ଡ ଝିଅ ପାଳିଥିଲେ । ତା'ର ନାଁ ଚନ୍ଦ୍ରକଳା । ସେଇ ଝିଅଟିକୁ ଦେଖି କବି ଏତେ ଖୁସି ହୋଇଗଲେ ଯେ ତାଙ୍କ ମୁହଁରୁ ଆପେ ଆପେ କେତେ ପଦ ସୁନ୍ଦର କବିତା ବାହାରି ପଡ଼ିଲା । ଚନ୍ଦ୍ରକଳା ମଧ ସେହି କବିତାକୁ ଶୁଣି ଖୁସି ହୋଇଗଲା ।

ଚନ୍ଦ୍ରକଳାକୁ ନେଇ କବି ଗୋଟିଏ କାବ୍ୟ ଲେଖିବା ଆରମ୍ଭ କରିଦେଲେ । ତା' ନାଁ ମଧ 'ଚନ୍ଦ୍ରକଳା' ଦେଲେ । ଅଠରଟି ଛାନ୍ଦ ଲେଖିସାରିବା ବେଳକୁ ହଠାତ୍ ଚନ୍ଦ୍ରକଳାର ମୃତ୍ୟୁ ହୋଇଗଲା । ତା'ର ମୃତ୍ୟୁରେ ବଳଦେବ ଦୁଃଖରେ ଭାଙ୍ଗି ପଡ଼ିଲେ । ଫଳରେ ତାଙ୍କର ହାତ ଆଉ ଚାଲିଲା ନାହିଁ । ତାଙ୍କର ସେଇ 'ଚନ୍ଦ୍ରକଳା' କାବ୍ୟଟି ଅଧା ହୋଇ ରହିଗଲା । ଆଉ ଯେତେ ଚେଷ୍ଟାକଲେ ମଧ ସେଇ କାବ୍ୟକୁ ଶେଷ କରିବା ସମ୍ଭବ ହେଲା ନାହିଁ ।

ସବୁଦିନ ପାଇଁ 'ଚନ୍ଦ୍ରକଳା' କାବ୍ୟ ଅସମାପ୍ତ ହୋଇ ରହିଗଲା । ହେଲେ ତାଙ୍କର ସେଇ ଅଧାକାବ୍ୟ 'ଚନ୍ଦ୍ରକଳା' କୌଣସି ଗୁଣରେ ଅନ୍ୟ କାବ୍ୟ ତୁଳନାରେ କମ୍ ନୁହେଁ ।

## ପ୍ରକୃତରେ ସେ କବିସୂର୍ଯ୍ୟ

ସୂର୍ଯ୍ୟ ନିଜର ଉଜ୍ଜ୍ୱଳ କିରଣ ଦ୍ୱାରା ପୃଥିବୀର ଅନ୍ଧାକର ଦୂର କରନ୍ତି । ଠିକ୍ ସେହିପରି କବିସୂର୍ଯ୍ୟ ବଳଦେବଙ୍କର ସଙ୍ଗୀତଗୁଡ଼ିକ ଉତ୍କଳବାସୀଙ୍କର ମନରୁ ଅନ୍ଧକାର ଦୂରେଇ ଦେଇଥିଲା ।

ତାଙ୍କ ଲିଖିତ ଚମ୍ପୂକାବ୍ୟଗୁଡ଼ିକ ଓଡ଼ିଆ ସାହିତ୍ୟ ଓ ସଂଗୀତ ଜଗତର ଗୋଟିଏ ଗୋଟିଏ ଅମୂଲ୍ୟ ସଂପଦ। ଏହା ସହିତ ସେ ଅନେକ ଭକ୍ତି ସଂଗୀତ ମଧ୍ୟ ରଚନା କରିଥିଲେ। ସେଗୁଡ଼ିକ ଆଜି ଓଡ଼ିଶାର ପୁର ପଲ୍ଲୀରେ ବେଶ୍ ଆଦର ଲାଭ କରିଛି। ଏହାଛଡ଼ା ତାଙ୍କ ଲିଖିତ 'ଜଗତେ କେବଳ' ଓ 'କାହାକୁ କହିବା' ଦୁଇଟି ବ୍ୟଙ୍ଗ କବିତା ଜନ ସମାଜରେ ବେଶ୍ ପରିଚିତ। ତାଙ୍କ ଲିଖିତ 'ହାସ୍ୟ କଲ୍ଲୋଳ' ଗଦ୍ୟ କାବ୍ୟଟିକୁ ପଢ଼ି ପାଠକ ନ ହସି ରହି ପାରିବେ ନାହିଁ। ସେ ଥିଲେ ପ୍ରକୃତରେ 'କବିସୂର୍ଯ୍ୟ'।

## ସୂର୍ଯ୍ୟ ବୁଡ଼ିଗଲେ

୧୮୪୫ ମସିହା ବୈଶାଖମାସର କଥା। କବିସୂର୍ଯ୍ୟ ଆଠଗଡ଼ ରାଜାଙ୍କ ଠାରୁ ନିମନ୍ତ୍ରଣ ପାଇ ପୁଣି ଆଠଗଡ଼କୁ ଯାଇଥିଲେ। ସେତେବେଳକୁ ସେ ପ୍ରାୟ ବୁଢ଼ା ହୋଇଯାଇଥାନ୍ତି। ଆଠଗଡ଼ରେ ରହିବା ସମୟରେ ହଠାତ୍ ତାଙ୍କୁ ଭୟାନକ ବସନ୍ତ ରୋଗ ଆକ୍ରମଣ କଲା। ଆଜିକାଲି ପରି ସେତେବେଳେ ତ ଏ ରୋଗ ପାଇଁ କିଛି ଔଷଧ ବାହାରି ନଥିଲା। ତେଣୁ ରାଜା ବଡ଼ ଚିନ୍ତାରେ ପଡ଼ିଲେ। ସବାରିଟିଏ ଆଣି ସେଥିରେ ବଳଦେବଙ୍କୁ ବସାଇ ବ୍ରହ୍ମପୁରକୁ ପଠାଇଦେଲେ। ହେଲେ ଫଳ କିଛି ମିଳିଲା ନାହିଁ। ସେହି ବସନ୍ତ ରୋଗ ହିଁ ତାଙ୍କର କାଳ ହେଲା। ବୈଶାଖ ମାସ ଶୁକ୍ଳପକ୍ଷ ଅକ୍ଷୟ ତୃତୀୟାର ମଧ୍ୟାହ୍ନ ସମୟରେ ଓଡ଼ିଶା ସାହିତ୍ୟ ଆକାଶରୁ କବିସୂର୍ଯ୍ୟ ସବୁଦିନ ପାଇଁ ଅସ୍ତ ହୋଇଗଲେ।

❑❑❑